ବନ୍ଦେ ପିତରଂ ।



# ଜାତୀୟ ଗୀତ ।

ଶ୍ରୀ ଶ୍ୟାମସୁନ୍ଦର ନନ୍ଦ
କର୍ତ୍ତୃକ ରଚିତ ।

ଶ୍ରୀ ଚନ୍ଦ୍ରଚୂଡ଼ ବି, ଉପାଧ୍ୟାୟଙ୍କ କର୍ତ୍ତୃକ
ପ୍ରଜା ବନ୍ଧୁ କାର୍ଯ୍ୟାଳୟରୁ ପ୍ରକାଶିତ ।
ରମ୍ଭା ।

ମୂଲ୍ୟ ଦୁଇ ପଇସା ।

KALLIKOTE ESTATE PRESS.

ଶ୍ରୀ ଶଶି ଭୂଷଣ ରାୟଙ୍କ ଉପହୃତ

## ଜାତୀୟ ଗୀତ ।

ଗଲାଣି ତ ଗଳ୍ପ　　　କଥାରେ ଜନନି
କାନ୍ଦିଲେ କି ଲାଭ ହେବ ;
ନୈରାଶ୍ୟ ସାଗରେ　　　ବୁଡ଼ି ରହିଲେ କି -
ଭବେ କେହି ବଡ଼ହେବ ?
ଅଭ୍ୟୁନ୍ନତ କଲେ　　　ମିଳିବ ସହଜେ
ସ୍ୱପ୍ନେ ଦେଖିନାହିଁ ଯାହା ;
ଯତ୍ନ କଲେ ହେବ　　　ଅଜ ଯା କାନ୍ତାର
ଶସ୍ୟକ୍ଷେତ୍ର ହବେ ତାହା ।
ସୁଷୁପ୍ତି ଶେଷରେ　　　ଜୀବ ଜାଗରିତ
ହେବାକୁ ଯତ୍ନ ପୂରଣ ;

ବଳ କାର୍ଯ୍ୟ ସିଦ୍ଧ ଶକ୍ତି ନଦେୟୁର
ତା ଯୋଗୁଁ ତ ସ୍ଫୁରଣ ।
ଉଠାଅ ସନ୍ତାନେ ଢାଳ ଦଅ କାନେ
କର୍ତ୍ତବ୍ୟ ମନ୍ତ୍ର ସକଳ ;
ମାତାର ଆହ୍ୱାନେ ଉପୁଜିବ ପ୍ରାଣେ
ନବୀନ ଉତ୍ସାହ ବଳ ।
କର୍ମବୀର ଛବି ପୁଅଙ୍କୁ ଦେଖାଇ
କହିଦଅ ଗୂଢ଼ କଥା ;
'ଅସାଧ୍ୟ' ନାମକ ହେୟ ବର୍ଣ୍ଣ ତ୍ରୟ
ଅଳସଙ୍କ ଶାସ୍ତ୍ରେ ଲେଖା ।
ଜଣେ ଯା କରିଛି, ଅନ୍ୟ କିପାଁ ତାହା
କରି ନପାରିବ କହ ;
ଉଦ୍ୟୋଗୀ ପୁରୁଷ ଚେଷ୍ଟାରେତ ମାଡ଼ି
ସ୍ୱର୍ଣ୍ଣଚିହ୍ନ ପ୍ରସବୁଛି ।
ଜମଣ କେବେହେଁ, ଡେଙ୍ଗା ଅପାର
ବଳ କାର୍ଯ୍ୟ ବୁଦ୍ଧିହୀନ ;

ପିତୃ ପିତାମହ ରକ୍ତ ଧମନୀରେ
ବହୁଛି ହେଲେହେଁ କ୍ଷୀଣ ।
ଶତ ଶତ ବର୍ଷ ମାଟିରେ ପଡିଲେ
ମାଟି ଜନ୍ମୁଅଛି ବହି ;
ଏତେ ସବୁ ହେଲେ ସୁଦ୍ଧା ତୋ କାଳରେ
ଶୋଭୁଛନ୍ତି କେତେ ରତ୍ନ ।
କାହିଁକି କହିବି ଉତ୍କଳ ଜନନୀ
ଅଟେ ଅତି ଅଭାଗିନୀ ;
ଚିର କାଳ ତାର ରହିଛନ୍ତି ଖ୍ୟାତ
ଯୋଗ୍ୟ—ସୁତ ପ୍ରସବିନୀ ।
ମନ୍ତ୍ରର ସାଧନ, ଶରୀର ପାତନ,
ମହାମନ୍ତ୍ର ହୃଦେ ଧରି
ହୁଅନ୍ତୁ ସମସ୍ତେ ସଦା ଅଗ୍ରସର
ଏମାନଙ୍କୁ ଅନୁସରି ।
ଉଠ ଉଠ ଭାଇ ଶୋଇ କାର୍ଯ୍ୟ ନାହିଁ
ପାହିଲାଣି ଅମା ରାତି

ନବୀନ ଉତ୍ସାହେ      କାର୍ଯ୍ୟେ ଲାଗିଯାଅ
କାର୍ଯ୍ୟ—ରତ ସବୁ ଜାତି
ନାହିଁତ ବିଳମ୍ବ      ଉଠିବାକୁ ରବି
ଓଡ଼ିଶା ଗୃହ—ଗବାକ୍ଷେ
ପ୍ରଭାତହିଁ କାର୍ଯ୍ୟ      କରିବାର କାଳ
ନକଟାଅ ଅବକାଶେ ।
ଏକାନ୍ତ କାନନେ      ମହୋଦଧି ତୀରେ
ଚନ୍ଦ୍ରଭାଗା ତୀର୍ଥେ ରାଜ
ଗନ୍ଧହସ୍ତୀପାତ      ହୋଇଲାଣି, ଅଚିରେ
ହସିବେ ତୋ କୀର୍ତ୍ତିରାଜ ।
ସାନ ବଡ଼ ଯେତେ      ଚେଷ୍ଟିତ ସବେ
କରିବାକୁ ମାତୃସେବା
ତୋର ଆଶୀର୍ବାଦ      ପାଇଲେ ଜନନୀ
ଦଶଜଣେ ଜଣେହେବା ।





ଅୟି ବନେ ମାତଃ           ବୀର ପ୍ରସବିନୀ
ଗଙ୍ଗାଠାରୁ ଗୋଦାବରୀ
ଗାଉଥିଲେ ଯଶ           ସତତ ତୋହର
ତୋ ପୁଅ କାହାକୁ ଡରି ।
ଆଜି ତୋର ପୁଏ,           କୀର୍ତ୍ତି ଶାନ୍ତିଦେବେ,
ଖର୍ବ ଓ ଡ଼ରୁ ଆପଣେ;
ପକ୍ଷୀ ଉଡ଼ିଗଲେ           ଚମକି ପଡନ୍ତି
ଲୁଚନ୍ତି କବାଟ କଣେ ।
କାନ୍ଧରେ ଯେ କାରେ           ବନ୍ଧୁ ଉକ୍ତ ଦେଇ
ସଙ୍ଖ୍ୟ ଯଶ ବଢାଇଲେ;
ତାଙ୍କ ବଂଶରେ           ପେଟ ପୋଡ଼ିବାକୁ
ଦିଅଦାପଣ ଘୁଞ୍ଚିଲେ ।

ତୋର ଶୁକ୍ଳଯଶ, ନିକୁଞ୍ଜେ ନିକୁଞ୍ଜେ ;
ଗାଉଥିଲେ କବି ସଦା ;
ମହାଦୀନା ହୀନା ହେବାରୁ ତୁ ସିନା
କବିକୁଳ ହେଲେ ପଦା ।
ମାଧବ, ଶ୍ରୀଧର, ଉପେନ୍ଦ୍ର, ଶାରଳା,
କବିସୂର୍ଯ୍ୟ ଜନ୍ମସ୍ଥାନ ;
ଦାସ୍ୟରେ ହୋଇଲ 'ଶାଗୁ ବୋହୁକଳ,'
'ବୈଦ୍ୟନାଟ,' ପ୍ରିୟସ୍ଥାନ ।
ଯେଉଁ ଗ୍ରନ୍ଥେ ଗ୍ରନ୍ଥେ ତୋ କୀର୍ତ୍ତି କଳାପ
ଜାଗୁଥିଲା ଗାଈ ଧିରେ ;
ଆଜ ଦଶା ଦେଖି କଏ ବା କହିବ
ଥିଲୁ ଭାଗ୍ୟବତୀ ଆଗେ ।
ଶୈଳେ, ଶୈଳେ, ଅଉ ନ ଶୋଭେ ଦେଉଳ;
ସଦାବର୍ତ୍ତ ଜଳାଶୟେ ,
ନ ଶୋଭଇ ଦେଶ ; ଧର୍ମ ଏ ବ୍ୟସନେ
ସଦାରତ ନାଗ୍ରଶୟେ ।

ଥିଲା ଏହି ସ୍ଥଳ, ପଣ୍ଡିତ ବହୁଳ
ନିର୍ଲୋଭ ଉଦାରମନା ,
ରାଜଦ୍ୱାରେ ପୂଜା ପାଉଥିଲେ ସଦା,
ନ ଥିଲା ଦୁଆର ମନା ।
ଶସ୍ତ୍ର, ଶାସ୍ତ୍ର ଚର୍ଚ୍ଚା ବଦଳେ ହୋଇଲା
ପରଗ୍ଲାନି , ପରହାନି ,
ଘଟୋଚିତ କାର୍ଯ୍ୟ ; ପଣ୍ଡିତ ବଦଳେ
ମୂର୍ଖ ରାଜଦ୍ୱାରେ ମାନୀ ।
ଯହିଁ ଏର କୀର୍ତ୍ତି, ଉପଦେଶାବଳୀ,
ଶୈଳେ, ଶୈଳେ, ସ୍ତୁଥିଲା
ଅହିଂସା ବଦଳେ ଭାଇ ଭାଇ କଳି
ତହିଁ ପୁଣି ସାର ହେଲା ।
ସମ୍ପ୍ରତ ସମ୍ଭବ ଶାସ୍ତ୍ରରତ୍ନ ଯାଙ୍କ
କୀଟଙ୍କ ପେଟକୁ ଗଲା,
ପଣ୍ଡିତଙ୍କ ପୁଅ ଉଦର ଜ୍ୱାଳାରେ
ଭିକ୍ଷା ମାଗି ମାଗି ମଲା ।

ଉଡ଼ୁଥିବ ପୋତ, ଜର୍ଦ୍ଧି ସାଗରେ
ପତାକା ଉଡ଼ାଉଥିଲା
ଯାହା ସେ ବୋଇତ ନାମ ହେଲା ଲୁପ୍ତ
ଓଡ଼ିଆ ଭାଗ୍ୟରେ ମଲା ।
ଓଡ଼ିଶାର ପଣ୍ୟ, ଦେଶ ବିଦେଶରେ
ନପାଏ ଆଉ ଆଦର
ବିଦେଶର ପଣ୍ୟ ଲଦିହେଲେ ଏଣିକି
ନଚଳଇ ଦଣ୍ଡେ ଘର ।
ମୋଟ ଛଦ କାଠ ପାନିଆ କୁଣ୍ଢେଇ
ପିତଳଖଣ୍ଡୁ ଦେଖିଲେ,
କିଏ ବା କହିବ ବାପ ବଡବାପେ
ଶିଳ୍ପୀ ପଣେ ବଡଥିଲେ ।
ଶିଳ୍ପୀ ପୂର୍ବତନେ, ଏକାମ୍ର କାନନେ
ନତ କତ ହୋଇ ଠୁଳ,
ପ୍ରିୟ କୀର୍ତ୍ତିରାଜି ଦୁର୍ଦ୍ଦଶା ଦର୍ଶନେ
ହେଉଛନ୍ତି ଶୋକାକୁଳ ।

କେ କହେ କାହାନ୍ତି ଇଷ୍ଟ ବ୍ୟୋମକେଶ
ରମ୍ୟ ଦେବାଳୟ ମୂର୍ତ୍ତି;
କେ କହେ ଦେଖ ମୋ ଜଳାଶୟ ଦଶା
ପଙ୍କେ ହୋଇଅଛି ପୂର୍ତ୍ତି ।
ନୀଳାଚଳ ଦଶା ଦେଖି ମହୋଦଧି
ମୁଣ୍ଡ କୋଡ଼ୁଅଛି ସଦା;
କାହିଁକି ନ କହେ କପାଳୁଁ ଶ୍ରୀକ୍ଷେତ୍ରୁ
ପ୍ରକୃତ ମନୁଷ୍ୟ ପଦା ।
ଧନ ମନ ଦେଇ ଯେଉଁ ଶ୍ରୀମନ୍ଦିର
ଓଡ଼ିଆଏ ରଚିଥିଲେ;
ତାହାଙ୍କ ସନ୍ତତ ସେହି ଦେଉଳରେ
ଚୂନ ଲେପି ନପାରିଲେ ।
ଦୂର ଦେଶୁଁ ଲୁହା ପଥର,ଅଣାଇଁ
ବିଚିତ୍ର ଦେଉଳ ରଚି
ଓଡ଼ିଆ ପ୍ରତିଭା ସର୍ବ ଜଗତର
ବିସ୍ମୟ ଜନ୍ମାଇଅଛି ।

ସେହି ଓଡ଼ିଆଙ୍କ ଅର୍ଦ୍ଧକ୍ଷେତ୍ର ଦଶା
ଝୁରି ଝୁରି କୋମଳାଙ୍ଗୀ-
ଚନ୍ଦ୍ରଭାଗା ଦେବୀ ଅଳପ ଦିନରେ
ହୋଇଗଲେ କୃଶଅଙ୍ଗୀ।
ସୁଦୃଢ଼ ସୁନ୍ଦର ଅଷ୍ଟାଦଶ ନଳା,
ମର୍କଟ-କେଶରୀ ସେତୁ
ଯାଜ୍ଞ ନଗରର ଯେମନ୍ତେ ପୁରାତନ
ଉତ୍କଳ-ଗୌରବ-କେତୁ।
ସେହି ଓଡ଼ିଆଙ୍କ ଦୁରଭାଗ୍ୟ ପୁଏ
ହୋଇ ଗଲେ ଏତେ ହୀନ;
ଅଜର ନିର୍ମିତ ଅଟ୍ଟାଳିକା ସେତୁଁ
ପାଣିଝରେ ପରଦିନ।
ଭକ୍ତ ହରିଦାସ, ମହମ୍ମ ଗାୟକ,
ଜଗାଲେ ଅମୃତ କାନେ;
ଶାସ୍ତ୍ର ଚର୍ଚ୍ଚା ସ୍ଥଳେ 'ମୁକ୍ତି ମଣ୍ଡପ'ରେ
ପୂର୍ଣ୍ଣ 'ହଅ' 'ହଅ' ତାନେ।

ସୁଅଧେନ ସିନା ମାଗ୍ନଙ୍କର ଟେକ
ସୁଧଠାରୁ ମାତୃ ସୁଖ;
ଛିନ୍ନଭିନ୍ନ ହୋଇ ପଡ଼ନ୍ତୁ ସୈଦଙ୍ଗେ
କପଚ ହରବୁଦୁଃଖ ।
ସହୋଦର ଭାଇ ବିଭିନ୍ନ ହୋଇଲେ
ନନ୍ଦୁ ଏ କାହାର ମାତା;
ଏଦଶା ମାଗ୍ନଙ୍କେ ଜୋହର କପାଳେ
ଲେଖିଥିଲା କ୍ରୁରଧାତା ।
ରଥ ଚକ୍ରପର ଭାଗ୍ୟ ଚକ୍ରଧୁରେ
ଦୁହେଁ ଭବେ କଞ୍ଜି ଚର;
ହୁଅନା ଅଧୀର ଦିନେ ହେଲେ ଭୋର
ଶୁଖିବ ଏ ଦୁଃଖ ନୀର ।
ଶୁଣିଲ ଭାଇଏ ହୋଇ ଏକ ମେଳ
କରୁଛନ୍ତି ପରାମର୍ଶ,
ନାଶିବେ ଭୋଦୁଃଖ ବଢ଼ାଇବେ ଟେକ
କାହିଁକି ଆଉ ବିମର୍ଷ ?

ବିଚନ ସଙ୍କସ୍ତୁ ନଥିଲେ ଉତ୍ସାହ

ଥିଲେ କାର୍ଯ୍ୟ ପ୍ରବୃତ୍ତ ଜାତ;

ଲହୃଅ ବିମନା ଙ୍କର ଅଶୀର୍ବାଦ

ପାଇବ ଏଦୁଃଖ ଗଢ଼ !





ଶ୍ରୀ ଶଶି ଭୂଷଣ ରାୟ କର୍ତ୍ତୃକ ଉପହୃତ

# ନୂଆ ଶିଶୁଗୀତ ।

## ଶିଶୁ ଶ୍ରେଣୀ ନିମିତ୍ତ

### ଉପହାର ।

ଭଲ ପିଲା କିଏ ଅଛୁ ବୁଝିଥ
ଅଞ୍ଜଳି ହସ୍ତରେ ହୋଇ ସେ ଠିଆ,
ଶିଶୁଗୀତ ନେଉ ସେ ଉପହାର
ଗୁରୁଙ୍କୁ ଯାଉ କରଇ ଜୁହାର ।

ଜଣେ ଛାତ୍ର ଅଞ୍ଜଳି ହସ୍ତରେ ଠିଆ ହେବ ଓ ଅନ୍ୟ ଛାତ୍ରଟି ତାହା ହସ୍ତରେ ଖଣ୍ଡିଏ ଏହି "ଶିଶୁଗୀତ" ପୁସ୍ତକ ଦେବ ।



### ରାଜା-ରାଣୀ ।

( ଜୟଗୀତ )

ଜୟ, ଜୟ, ଜୟ, ଭାରତେଶ୍ୱର,
ମହିମମଣ୍ଡିତ ସେ ନୃପକୁଳବର । ୧ ।
ଭାରତଈଶ୍ୱରୀ, ମା' ଦୟାବତୀ,
ଅତି ଗୁଣବତୀ, ପତ୍ନୀ ସତୀ । ୨ ।

ପୂରୁଛି ସାମାଜ୍ୟ ଗୌରବଧନେ,
ସୁଖୀ ହୋଇଛୁ ଯା ସୁଖ—ଶାସନେ । ୩ ।
ଦୀର୍ଘାୟୁ, ସୁଯଶ ଲଭନ୍ତୁ ସେହୁ,
ବନ୍ଧୁଙ୍କ ଚରଣେ ପ୍ରାର୍ଥନା ଏହୁ । ୪ ।

ହାତ ଯୋଡ଼ି ଅଣ୍ଟୁ ମାଡ଼ିବସି ଉର୍ଦ୍ଧ୍ୱକୁ ଚାହିଁ ଭକ୍ତିଭାବରେ ବୋଲିବେ । ସମ୍ମୁଖରେ ରାଜା ରାଣୀଙ୍କ ଛବି ରଖିଥିବେ ।



## ସ୍ୱରବର୍ଣ୍ଣ ଗୀତ ।



ଉମା କହେ "ମା", "ମା"
"ଅ" ଗଲେ ପଢ଼େ "ଆ" । ୧ ।
ହ୍ରସ୍ୱ "ଇ", ଦୀର୍ଘ "ଈ",
ପଢ଼ି ହସ "ହି", "ହି" । ୨ ।
ହ୍ରସ୍ୱ "ଉ", ଦୀର୍ଘ "ଊ"
ସାପ ହୁଏ "ହୂ", "ସୂ" । ୩ ।
ହ୍ରସ୍ୱ "ଋ", ଦୀର୍ଘ "ୠ",
କେଦସ୍ ବାଜେ "ଋ", "ୠ" । ୪ ।
"ଏ" ଗଲେ ପଢ଼େ "ଐ"
ଘୁଙ୍ଗୁ ନାଚେ "ଠେ", "ଠୈ" । ୫ ।
"ଓ" ଆଗେ ପଢ଼େ "ଔ",
ଶିଶୁ ଡାକେ "ହୋ", "ହୌ" । ୬ ।



## ବ୍ୟଞ୍ଜନବର୍ଣ୍ଣ ଗୀତ



କ, ଖ, ଗ, ଘ, ଙ, ଘରୁ ଗଛ ମୂଳେ ବସିଛି ବେଙ୍ଗ । ୧ ।
ଚ, ଛ, ଜ, ଝ, ଞ, ବେଙ୍ଗ ଡୋବାକୁଛି ଞ, ଞ । ୨ ।

ଟ, ଠ, ଡ, ଢ, ଣ — ଘରେ ଦେଖୁଛ ଶୃଉଠା କୋଣ । ୩ ।
ତ, ଥ, ଦ, ଧ, ନ, — ଭୁଜା ଖାଇବାକୁ ହେଉଛି ମନ । ୪ ।
ପ, ଫ, ବ, ଭ, ମ, — ପିଅ ବାବା ଦୁଧ ଥାଉ ଗରମ । ୫ ।
ଯ, ର, ଳ, ବ, — ପାଠ ପଢ଼ ଧନ ହାତୀ ଚଢ଼ିବ । ୬ ।
ଶ, ଷ, ସ, ହ, — କଅଣ ଖାଇବ ଚମ୍ପଲ କହ । ୭ ।
ଂ, ଃ, ଁ, । — ଆକାଶେ ଦେଖ ତାରା ଚନ୍ଦ୍ର, ଚନ୍ଦ୍ର ।୮।

ଛାତ୍ରମାନେ ଏହି ଗୀତ ଅବୃତ୍ତି କଲାବେଳେ ଅଗରୁ ପ୍ରସ୍ତୁତଥିବା ମାଟି ବେଙ୍ଗ ଓ କାଗଜର ସାରୁ ଗଛ ଅଡ଼କୁ ହାତ ଦେଖାଇବେ । "ବେଙ୍ଗ ବୋବାଇବା" "ଭୁଜା ଖାଇବା", "ଦୁଧ ପିଇବା", "ହାତୀ ଚଢ଼ିବା", "ଆକାଶରେ ତାରା ଦେଖାଇବା" ଅଭିନୟ କରିବେ ।

---



## ଭାଇ ଭଉଣୀ ।



ଏକ ମା ପେଟରୁ ଜନମିଥାଇଁ,
ସେ ମୋର ଭଉଣୀ, ମୁଁ ତାର ଭାଇ । ୧ ।
ସେ ପୁଣି ଯା ଠାରୁ ଖୀର ଖାଇଛି,
ମୋତେ ଖୀର ଦେଇ ସେ ବଢ଼ାଇଛି । ୨ ।

ସେ ମୋଠୁଁ ବଡ଼, ମୁଁ ତା ଠାରୁ ସାନ,
ବାପ ମାଆଙ୍କୁ ତ ଏକା ସମାନ । ୩ ।
ଖାଇବା ଦରବେ ନ କରୁଁ ଅଳି,
ମୋ ଖରଧା ଚାଟୁଁ ନ ଯିବ ଟଳି । ୪ ।
ଦୁହେଁଯାକ ଦଶୁଁ ଯେ ଏକା ଦୂଳ,
ବାପ ମାଆଠାରେ ନ କରୁଁ ଅଳି । ୫ ।

ପ୍ରଥମ ଧାଡ଼ି ବୋଲିବା ସଙ୍ଗେ ଭାଇ ଭଉଣୀର ବା ବାଳକ ବାଳିକାର ହାତ ଧରି ନେଇ ସନ୍ନେହରେ ପାଖରେ ଠିଆ କରିବ ଓ ଭାଇ ଏକା ଅବୃତ୍ତି କରିବ । ଭଉଣୀ ନୀରବରେ ଥାଇ ଶେଷ ଦୁଇ ଧାଡ଼ି ଭାଇ ସହିତରେ ଏକାବେଳକେ ବୋଲିବ ।



## ପିତା ମାତା ।



ପିତା ଅଟନ୍ତି ସ୍ବର୍ଗକାଶ,
ମାତା ଦେବୀଙ୍କ କଷ୍ଟ ଭାର । ୧ ।
ଦଶ ମାସ ଗର୍ଭରେ ଧରି,
ଶିଶୁରୂପେ ଜନମ କରି । ୨ ।
ସ୍ତନ୍ୟ ଦେଇଣ ବଢ଼ାଇଲେ,
ପିତା ଯେ ପାଠ ପଢ଼ାଇଲେ । ୩ ।
ଅସୁଖ ଦେଖିଲେ ସେ ଦୁଃଖ,
ନ ଥାଏ ତାଙ୍କ ମନେ ସୁଖ । ୪ ।
ଶିଶୁପାଇଁ ସେ ପ୍ରାଣପଣେ,
ଚେଷ୍ଟା କରନ୍ତି ଅନୁଦିନେ । ୫ ।
ପାଳି ପାଳି ସେ କଲେ ଏତେ,
ଧନ୍ୟ ତାହାଙ୍କ ସ୍ନେହ କେତେ । ୬ ।

ଅମ୍ଭେ ବଞ୍ଚିବା ପର୍ଯ୍ୟନ୍ତେ,
ଭୁଲିବା ତାହାଙ୍କୁ କେମନ୍ତେ । ୬ ।

ଭକ୍ତି ଭାବରେ ହାତ ଯୋଡ଼ି ଏକ ଦଳ ବାଳକ ବୋଲିବେ ।

---

## ମାମୁଘର ।

ମୋତେ ଆନନ୍ଦ ଲାଗେ ମୋ ମାମୁଘରେ,
ମାମୁଙ୍କ ସ୍ନେହ ଭାର ମୋର ଉପରେ । ୧ ।
ଯେ ପାଠ ପଢ଼ୁଛି ମୁଁ ମୋଠାରୁ ଜାଣି,
ନୂଆ ନୂଆ ବହି ସେ ଦିଅନ୍ତି ଆଣି । ୨ ।
ମାଇଁ କୋଳେ ବସେଁ ମୁଁ ଆନନ୍ଦରେ,
ତାଙ୍କ ସ୍ନେହ ଅତୁଳ ଏ ଭୁବନରେ । ୩ ।
ଖେଳିବା ଦରବ ସେ ମୋ ପାଇଁ ଆଣି,
ଗେହ୍ଲା କରିଣ ମୋତେ ବୋଲନ୍ତି ବାଣୀ । ୪ ।
ମୋର ପିଠିରୁ ମାଇଁ ଧୋଇ ଅଞ୍ଜିଁ ସି,
ଧୂଳି ମାଟି ଝାଡ଼ନ୍ତି ହୋଇଣ ଖୁସି । ୫ ।
କେତେ ସୁଖ ମୋହର ମାମୁଙ୍କ ଘରେ,
କିଛି ନାହିଁ ତା ପରି ଏ ଭୁବନରେ । ୬ ।
ମୋତେ ଆନନ୍ଦ ଲାଗେ ମୋ ମାଇଁ ଘରେ,
ମାଇଁଙ୍କ ସ୍ନେହ ଭାର ମୋର ଉପରେ । ୭ ।

ଜଣେ ବାଳକ ଆବୃତ୍ତି କରିବ । "ନୂଆ ବହି ଧରିବା" "ଖେଳିବା ଦ୍ରବ୍ୟ ଧରିବା" "ପିଠି ଅଞ୍ଜିଁ ଦିବା" "ଧୂଳି ମାଟି ଝାଡ଼ିବାର" ଅଭିନୟ କରିବେ





## ଜହ୍ନମାମୁ ।

ଅରେ ଜହ୍ନମାମୁ ଶରଦ ଶଶୀ,
ମୋ ପୁଅ ହାତରେ ପଡ଼ନ୍ତୁ ଖସି । ୧ ।
ଆକାଶୁଁ ଓହ୍ଲାଇ ରଥ ଚଳରେ,
ଖେଳ ମୋ ପୁଅ ତୋହ ସଙ୍ଗତରେ । ୨ ।
ଖାଇବାକୁ ସର ଲବଣୀ ଦେଇ,
ଦେଉଥିବ ଅମୃତପାଣି ପେଇ । ୩
ଶୀତଳ ପଟିରେ ଶୁଆଇ ଥିବ,
ସୁନା ଖଟୁଲି ତୋପାଇଁ ଆଣିବ । ୪ ।
ଦୁହେଁ ଯାକ ମିଶି ଖେଳିବ ଦୋଳି,
ମୁହଁରେ ଚନ୍ଦନ ଦେବରେ ବୋଳି । ୫ ।
ଜହ୍ନମାମୁଠାରୁ ମୋ ପୁଅ ଗୋରା,
ସଂସାର ମଧ୍ୟରେ ଦିଶିବ ତୋରା । ୬ ।

ବାଳକା ଓ ପ୍ରଥମ ବର୍ଷୀୟ ଶିଶୁ ଏହି ଗୀତଟି ଉଚ୍ଚାରି କରିବେ । "ଜହ୍ନମାମୁଙ୍କୁ" ଦେଖାଇବାପାଇଁ "ଆକାଶକୁ ହାତ ଦେଖାଇବା", "ହାତରେ ଖସିବା", "ଆକାଶରୁ ଓହ୍ଲାଇବା", "ସରଲବଣି ଖାଇବାକୁ ଦେବା", "ପିଇବା", "ଶୋଇବା", "ଦୋଳି ଖେଳିବା", "ଚନ୍ଦନ ବୋଳିବା" ପ୍ରଭୃତିର ଅଭିନୟ କଲେ ସୁନ୍ଦର ହେବ

## ଆସ, ଆସ ଭାଇ ଖେଳିବା ବସି ।

---

ଆସ, ଆସ, ଭାଇ, ଖେଳିବା ବସି,
ମୋ ନାମ କୁମୁଦ, ତୋ ନାମ ଶଶୀ । ୧ ।

ମାତାଙ୍କୁ କହୁଣ ହେବା ସଙ୍କୋଚ,
ସଙ୍ଗ ହୋଇ ଦୁହେଁ ଖାଇବା ଭାତ । ୨ ।

ଆସ, ଆସ, ଭାଇ, ଖେଳିବା ବସି,
ଯଦୁମଣି ମୋତେ ମାଇଲା ହସି । ୩ ।

ଅନ୍ୟ ତା ସଙ୍ଗରେ ବୁଲିବି ନାହିଁ,
ମିଛୁଆ ପିଲା ସେ ନ ଦେଖେଁ କାହିଁ । ୪ ।

ଆସ, ଆସ, ଭାଇ ଖେଳିବା ବସି,
ଯଦୁକୁ ପଖରେ ନ ଦିବା ଶଶୀ । ୫ ।

ତୋହ ଠାରେ ମୋର ଆନନ୍ଦ ଯେତେ,
ଅନ୍ୟ କାହାଠାରେ ନାହିଁ ତ ସେତେ । ୬ ।

ଜଣେ କୁମୁଦ ନାମରେ ଠିଆ ହେବ, ଜଣେ ଶଶୀ ନାମରେ ଠିଆ ହେବ, ଯଦୁମଣି ନାମରେ ଜଣେ ଅଦୂରରେ ଠିଆ ହୋଇଥିବ ବା ବସିଥିବ । କୁମୁଦ ଶଶୀର ହାତଧରି ଖେଳିବାକୁ ଯିବାର ଅଭିନୟ କରିବା ସ୍ୱର ଉଚ୍ଚ ନ ହୋଇ ଧୀର ହେବା ଉଚିତ ।





# "ମୋ ସୁନାପୁଅଟି" ।



ମୋ ସୁନାପୁଅଟି ଭଲ,
କରେ ନାହିଁ କଲବଲ । ୧ ।

ମୋ ସୁନାପୁଅଟି ଶିଶୁ,
ସୁନାଗୃହ ଘର ଦଶୁ । ୨ ।

ମୋ ସୁନାପୁଅଟି ସାଧୁ,
ତା ସଙ୍ଗରେ ସଙ୍ଗୀ ସାଧୁ । ୩ ।

ମୋ ସୁନାପୁଅଟି ଧୀର,
ମନ ତାହାର ଗମ୍ଭୀର । ୪ ।

ମୋ ସୁନାପୁଅଟି ବୀର,
ଚାଲୁଥାଏ ଧୀରି ଧୀର । ୫ ।

ମୋ ସୁନାପୁଅଟି ଗୋରା,
ସରାଗ ଗୃହରୁ ତୋରା । ୬ ।

ମୋ ସୁନାପୁଅଟି ଶାନ୍ତ,
ଶିଶୁ କୋମଳ ନିତାନ୍ତ । ୭ ।

କ୍ଷୁଦ୍ର ବାଳିକା ଜଣେ ପୁଅଟୋଏ ସ୍ନେହ ଖେଳନା ହାତରେ ଧରି ଅନୁକୃତି କରିବ । ସ୍ନେହ ସୂଚକ ସ୍ୱରରେ ବୋଲିବ ।

# ସଂଖ୍ୟା—ଗଣନ ।



୧ ୨ ୩ ୪ ୫ ୬ ୭ ୮ ୯ ୦

( ୧ )

ଏକ କହୁ ଶିଶୁମାନେ,
ଠିଆ ହେବା ସାବଧାନେ ।
ଦୁଇ ବୋଲୁ ଧୀରେ ବସି,
ପୁଣି ଉଠି, ପୁଣି ବସି ।
ତିନି ଏବେ ଠିଆ ହେବା,
ଚାରିଆଡ଼େ ଚାହିଁ ଥିବା ।

( ୨ )

ଏକ କହୁ ହୁଅ ଠିଆ,
ଦୁଇ କହୁ ବସି ଯାଅ ।
ଏକ, ଦୁଇ, ତିନି ବୋଲି,
ଆସ ଭାଇ ଧୀରେ ଚାଲି ।
ଚାରି, ପାଞ୍ଚ, ଛଅ, ସାତ,
ଆଠ, ନଅ, ଦଶ, ଶତ ।
ଉପରେ ଆକାଶ, ଚାହିଁ ଛାତି,
ତଳକୁ ଚାହିଁଲେ ଦେଖଇ ମାଟି ।

ଶିଶୁମାନେ ଏ କବିତାଟି ଆବୃତ୍ତି କରିବା ସାଙ୍ଗେ ସାଙ୍ଗେ 'ବସିବା' 'ଉଠିବା' 'ଚାରିଆଡ଼େ ଚାହିଁବା' 'ଧୀରେ ଚାଲିବା' 'ଉପରକୁ ଚାହିଁବା' 'ମାଟିକୁ ଚାହିଁବା'ର ଅଭିନୟ କରିବେ । ଏକ ଦୁଇ ପ୍ରଭୃତି ସଂଖ୍ୟା ଜ୍ଞାପକ ଗୋଲି ବା ମଞ୍ଜି ଆଦି ଯଥୋଚିତ ଅଭିନୟ କରିବେ ।



## ମିଶାଣ ।



ଏକ ସଙ୍ଗେ ଏକ ମିଶି ଦୁଇ ହେଲ,
ତିନ, ଏକ ହେଲ,
ତିନ ସଙ୍ଗେ ଏକ ମିଶିଲେ ହେଲ,
ଚାରି ଏକ ପାଞ୍ଚ ହେଲ । ୧ ।
ପାଞ୍ଚ ଏକ ଛଅ ମନେ ରଖିଥାଅ,
ଛଅ ଏକ ମିଶି ସାତ,
ସାତ ସଙ୍ଗେ ଆଉ ଏକ ମିଶି ଯାଉ,
ଆଠ ହୋଇଅଛୁ ଜାତ । ୨ ।
ଆଠ ଅଙ୍କ ଏକ ନଅ ହେଲ ଦେଖ,
ନଅ ଏକ ଦଶ ହୋଇଲା,
ଦଶ ଆଉ ଏକ ମିଶିଣ ଏଗାର,
ମନେ ରଖ ସବୁ ପିଲା । ୩

ଶିଶୁମାନେ ହାତରେ ଗୋଲି ବା ମଞ୍ଜି ନେଇ ମିଶାଣର ପ୍ରକ୍ରିୟା କରୁଥିବେ ଏବଂ ସଙ୍ଗେ ସଙ୍ଗେ ଗଣିତ ଆବୃତ୍ତି କରୁଥିବେ ।



## ଫେଡ଼ାଣ ।



ପାଞ୍ଚ ଜଣୁ ଜଣେ ଚାଲି ଗଲେ ଯାଇ
ଚାରି ଜଣ ବାକି ରହେ,
ଚାରି ଜଣୁ ଜଣେ ପଳାଇ ଗଲେ ହେ
ବାକି ଦେଖ ତିନ ରହେ । ୧ ।

ତିନି କୁଣ୍ଡୁ ଜଣେ ଚାଲି ଗଲେ ଘର
ଦୁଇ ଯେ ସ୍ଥିର ହୋଇଲେ,
ଦୁଇରୁ ଗୋଟିଏ ଗଲେ ପଳାଇଣ
ବାକି ଯେ ଏକା ବସିଲେ । ୨ ।

ଏକ କୁଣ୍ଡୁ ଏକ ଗଲେ ଚାଲି ଏବେ
କେହୁ ଅଉ ନାହିଁ ଜାଣ,
ଉପର କଥାକୁ ମନେ ହେଜ ହେଜ
ଶିଖ ଏପରୁ ଫେଡ଼ାଣ । ୩ ।

ପାଞ୍ଚ ଜଣ ବାଳକ ଏକାଠି ଠିଆ ହୋଇ ଆବୃତ୍ତି କରିବେ ଏବଂ ଆବୃତ୍ତି ସଙ୍ଗେ ସଙ୍ଗେ ସେଥିରୁ ଜଣ ଜଣ ହୋଇ ଚାଲି ଯାଉଥିବେ ।



## ପାଚିଲା କୋଳି ।



ପାଚି ଲାଲ କୋଳି, ପାଚିଲା କୋଳି, ପେନ୍ଥା ପେନ୍ଥା ଝୁଲୁଛି ।
କିଏ ଲିଚୁ, କିଏ କଦଳି, କେତେ ଶୋଭା ଦିଶୁଛି । ୧ ।
କିଏ ନେବ କୋଳି, ଭାଇ, ମିଠା ପାଚିଲା କୋଳି,
ଗୀତ ବୋଲି ବୋଲି ଖାଅ କୋଳି, ମାଉଣି ଢାଳି । ୨ ।

ଜଣେ ଶିଶୁ ମସ୍ତକରେ ଫଳ ଡାଲା ଧରି ଏହି ଗୀତ ଆବୃତ୍ତି କରିବ ଓ ଅନ୍ୟମାନଙ୍କୁ ବିକ୍ରୟ କରୁଥିବାର ଅଭିନୟ କରିବ .



## ଚୁଉଁକୁ ମୂଷି ।



"ଚୁଉଁକୁ ମୂଷିରେ ଚୁଙ୍କେଇ ମୁହଁ,
ଧାନ ଭରଣଙ୍କ ଖାଉଥା ବସି । ଭୁଉ ଥା ମୁଁ ଯାଉଛୁ ରୁଷି" । ୧ ।
ଚୁଉଁକୁ ମୂଷିର ଶେଷଟିଅ ପାଦ । ଚୁଉଁକୁ ମୂଷିକୁ ନାହିଁ ସୁଆଦ । ୨ ।
ଚୁଉଁକୁ ମୂଷିର ଦେହ ଚିକ୍କଣ । ଯା ଅଁସ କରେ ଏ ଜଣ ସେ ଜଣ ।
ଚୁଉଁକୁ ମୂଷିର ପାଟି ମୁନିଆଁ । ମୂଷିଟି ମୋହର ପିଲ୍ଲ ଜାତିଯା । ୪ ।
ଚୁଉଁକୁ ମୂଷିର ଦରେଶ୍ଟି କଥା । ପେଟ ପୂରଥିଲେ ଝୁଲଏ ମଥା । ୫ ।
ଚୁଉଁକୁ ମୂଷିର ଦେହ ପାଉଁଶୀ । ନ ଖାଇବା ଯାଏ ନୁହଁ ବାଉଳ । ୬ ।
ଚୁଉଁକୁ ମୂଷିର ଅପୂର୍ବ ବେଶ । ଦୁନୀ ଗୃହଁ ଭିତରେ ନେ ମୁହଁ ବସ । ୭ ।
ଚୁଉଁକୁ ମୂଷିର ଖାଦ୍ୟ ଯେ ଘାସ । ମୃତ୍ତିକା ମଧରେ କରେ ସେ ବାସ ।

ଗୋଟିଏ ବାଳକ ମୃତ୍ତିକା ନିର୍ମିତ ଗୋଟିଏ ମୂଷାର ଖେଳନା ଗୋଟିଏ କାଉଁଶ ନିର୍ମିତ କ୍ଷୁଦ୍ର ଗୃହଟିରେ ସଯତ୍ନରେ ରଖି ଅଙ୍ଗୁଳି ସଙ୍ଗେ ସଙ୍ଗେ ମୂଷାର ଯେଉଁ ଯେଉଁ ଅଙ୍ଗର କଥା ପଡ଼ିବ ସେହି ସେହି ଅଙ୍ଗ ପ୍ରଦର୍ଶନ କରିବ ।



## ଷଡ଼ରସ ।



ଷଡ଼ରସ ମଧେ ମଧୁର ସାର,
ନିମ୍ବ ପତ୍ରର ଯେ ପିତା ଅସାର ।
ଲୁଣ ଲୁଣିଆ, ତେନ୍ତୁଳି ଆମ୍ବିଳା,
କଷାଫଳ ମଧେ ହରଡ଼ା, ଅଁଳା ;
କଟୁ ଯେ କେମନ୍ତ ବିନି ଜାଣିଚ,
ଅଛି ଲଙ୍କା ଏ ଲଙ୍କା ମରିଚ ।

କେତେ ଗୁଡ଼ିଏ ବାଳକ ଏହି ଷଡ଼ରସର ସମସ୍ତ ପଦାର୍ଥ ହାତରେ ଧରି ଚାଖିବାର ଅଭିନୟ ସଙ୍ଗେ ସଙ୍ଗେ ଗୀତର ଅଭିନୟ କରିବେ ।



## ଦୋଳି ଖେଳ ।



ଦୋଳି ଖେଳ ଖେଳିବାକୁ ଚାଲ ଚାଲ, ଭାଇ,
ଦୋଳି ଦେଖ ଝୁଲୁଅଛି, ବସେ ମୁହିଁ ଯାଇ । ୧ ।
ବସିଛି ମୁଁ ସାବଧାନେ, ଧର ତାକୁ ଠେଲି,
ଠେଲି ନେଇ କରି ଦୂର, ଆଣ ପୁଣି ପେଲି । ୨ ।

ଦୋଳି ଖେଳ ଖେଳିବାକୁ, ଚାଲ ଚାଲ, ଭାଇ,
ଦୋଳି ଦେଖ ଝୁଲୁଅଛି, ବସ ତୁହି ଯାଇ । ୩ ।

ଗୋଟିଏ କ୍ଷୁଦ୍ର ଦୋଳି ଟାଙ୍ଗି ଦେଇ ଦୁଇପାଖରେ ଦୁଇ ଜଣ ବାଳକ ବା ବାଳିକା ଠିଆ ହୋଇ ଅବସ୍ଥିତି କରିବେ । "ଠେଲିଦେବା" ଓ "ପୁଣି ପେଲି ଆଣିବା" ଅଭିନୟ କରିବେ । ପ୍ରକୃତ ଦୋଳି ନ ଥିଲେ କେବଳ ହସ୍ତ ସଞ୍ଚାଳନଦ୍ୱାରା ଏହି କ୍ରିୟା ଦେଖାଇ ଦିଆଯାଇ ପାରେ ।



# ଦିଗ ।




ସୂର୍ଯ୍ୟ ଯେଉଁ ଆଡୁ ହୁଏ ଉଦୟ,
ସେ ଦିଗଟି ପୂର୍ବ ଜାଣ ନିଶ୍ଚୟ । ୧ ।
ଯେଉଁ ପାର୍ଶ୍ୱେ ସୂର୍ଯ୍ୟ ଯାଆନ୍ତି ବୁଡ଼ି,
ପଶ୍ଚିମ ଦିଗ ସେ ନ ଯିବ ହୁଡ଼ି । ୨ ।
ଠିଆ ହୋଇଲେ ପୂର୍ବକୁ ଅନାଇ
ଡାହାଣ ପାଖ ଦକ୍ଷିଣ ବୋଲାଇ । ୩ ।
ବାମ ପାଖ ଅଙ୍ଗ ଅଟେ ଉତ୍ତର,
ଶିଶୁ ଏହି ଦିଗେ ବଢ଼ାନ୍ତୁ କର । ୪ ।
ଅଗ୍ନି କୋଣ ଅଟେ ପୂର୍ବ ଦକ୍ଷିଣ,
ଉତ୍ତର ପଶ୍ଚିମ ବାୟୁକୁ ଚିହ୍ନ । ୫ ।
ନୈର୍‌ଋତ କୋଣଟି ପଶ୍ଚିମ ଦକ୍ଷିଣ,
ଉତ୍ତର ପୂର୍ବକୁ ଐଶାନ୍ୟ ଜାଣ । ୬ ।
ଚାରୋଟି ଦିଗ ଯେ, କୋଣ ଚାରୋଟି,
ଏହିପରି ହେଲା ଦିଗ ଆଠୋଟି । ୭ ।
ଅଧ ତଳ ଅଟେ, ଊର୍ଦ୍ଧ୍ୱ ଉପରେ,
ଦଶ ଦିଗ ହେଲା ଏହି ରୂପରେ । ୮

ଛାତ୍ରମାନେ ଏହି ଗୀତର ଆବୃତ୍ତି ସଙ୍ଗେ ସଙ୍ଗେ ଯେଉଁ ଦଗର କଥ ଯେତେବେଳେ ପଢ଼ିବ, ସେତେବେଳେ ସେହି ଦଗ ଆଡ଼କୁ ତୁଲ ନୟମରେ ଘୁରି ଯାଇ ହସ୍ତ ବଢ଼ାଇ ଦେଖାଇବେ । ଅଧ ଊର୍ଦ୍ଧ୍ୱ ବେଳେ ଛାତି ଜହାଁନ୍ଧ'ର ଉପରକୁ ଉଠିବ ଓ ତଳେ ପଢ଼ିବ । ଦଶଦଗ ବେଳେ କ୍ଷିପ୍ରତା ସହକାରେ ସବୁ ଆଡ଼କୁ ହସ୍ତ ସଞ୍ଚାଳନ କରିବ ।

ପ୍ରଥମବର୍ଷୀୟ ଶିଶୁଶ୍ରେଣୀ ସମାପ୍ତ ।



# ଦ୍ୱିତୀୟବର୍ଷୀୟ ଶିଶୁଶ୍ରେଣୀ ।

## ଉଠା ବସା ।



ଏକ ଏକ ଦୁଇ ଚଳ ଧାଡ଼ି ହୋଇ । ୧ ।
ଦୁଇ ଦୁଇ ଚାରି କୁଦ କୁଦା ମାରି । ୨ ।
ତିନି ତିନି ଛଅ କହ ବସି ଯାଅ । ୩ ।
ତିନି ଚାରି ସାତ ଯୋଡ଼ି ଦୁଇ ହାତ । ୪ ।
ଚାରି ଚାରି ଅଠ କହ ପୁଣି ଉଠ । ୫ ।
ଚାରି ପାଞ୍ଚ ନଅ ଛୁଟି ଚାଲି ଯାଅ । ୬ ।
ପାଞ୍ଚ ପାଞ୍ଚ ଦଶ ପୁଣି ଫେରି ଆସ । ୭ ।

ଏହିପରି ଅବସ୍ଥାନ୍ତ ଅନୁସାରେ ଯେତିକି ସଂଖ୍ୟକ ଛାତ୍ର ଅଛି ମିଶି ଆବୃତ୍ତି କରିବେ ।



## ଶରୀର ।

ମୋ ଶିର ଉପରେ ଅଛି, ଦେଖ, କଳା କେଶ,
ଜିଲିକିଟେ ହାସ ମାରୁଛି, ଏ ମୋ ଗଣ୍ଡ ଦେଶ । ୧ ।

ଭ୍ରୂ ଦୁଇଟି ଶୋଭେ, ଦେଖ ମୋ ଦୁଇ ନୟନ;
ନାସିକା ଏହାକୁ କହେ; ଏ ଦୁଇ ଶ୍ରବଣ । ୨ ।
ଚିବୁକ ଦେଖ ହେ, ଏହି ମୋ ମୁଖମଣ୍ଡଳ,
ଉପରେ ରହିଛି ଓଷ୍ଠ, ଅଧର ଯେ ତଳ । ୩ ।
ହାତ ମାରେ ମୁହିଁ କାନ୍ଧେ, ଦେଖ ଏ ମୋ ଗାଲ,
ଏହା ଅଟେ ମୋର କଣ୍ଠ, ଏହି ବକ୍ଷସ୍ଥଳ । ୪ ।
ଦୁଇ ବାହୁ ଏହି ମୋର, ଏହି ପୁଣି ସ୍କନ୍ଧ,
କହୁଣୀ ପ୍ରକୋଷ୍ଠ ଦେଖ, ଏହି ମଣିବନ୍ଧ । ୫ ।
ଅଙ୍ଗୁଷ୍ଠ, ତର୍ଜନୀ, ମଧ୍ୟା, ଅନାମିକା ପୁଣି,
କନିଷ୍ଠା ଅଙ୍ଗୁଳି ସର୍ବେ, ଦେଖ, ଗଣି, ଗଣି । ୬ ।
ଉଦର ଏହାକୁ କହି, ଏହି ପୃଷ୍ଠଦେଶ,
ମେରୁଦଣ୍ଡେ ହାତ ଦେଇ, କଲି ସର୍ବ ଶେଷ । ୭ ।
ଗୋଡ଼ିଟି ଦକ୍ଷିଣ ଦେଖ, ଏ ଗୋଡ଼ିଟି ବାମ,
କଟି, ନାଭି, ଏହି ଦେଖ, ଉରୁ ଏହା ନାମ । ୮ ।
ଏ ମୋ ଗୋଇଠି, ପାପୁଲି, ଅଙ୍ଗୁଳି ସକଳ,
ରକ୍ତ, ମାଂସ, ଅସ୍ଥି ଦେଖ, ବିଭୁଙ୍କ କୌଶଳ । ୯ ।
ସେ ବିଭୁଙ୍କ ପାଦପଦ୍ମେ, ନମସ୍କାର କରି,
ଭକ୍ତି ଭରେ ବିଭୁ ନାମ, ଗାଅ ନିରନ୍ତର । ୧୦ ।

ଏହା ଗୋଟିଏ ସୁନ୍ଦର ଅଭିନୟ । ଛାତ୍ରମାନେ ଧାଡ଼ି ହୋଇ ଠିଆ ହୋଇ ଶରୀରର ପ୍ରତ୍ୟେକ ଅଂଶ ହସ୍ତଦ୍ୱାରା ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ଆବୃତ୍ତି କରୁଥିବେ । ଶେଷରେ ବିଭୁଙ୍କ ନିକଟରେ ନତ ହୋଇ ପାଦଟି ଆବୃତ୍ତି କଲାବେଳେ ହାତ ଯୋଡ଼ି ଅବନତମସ୍ତକ ହେବେ ।



## ଇନ୍ଦ୍ରିୟ ।

ଗୋପାଳ—ଆଖି ଦୁଇ ଅଛୁ ଦେଖିବାପାଇଁ,
ଦର୍ଶନ ଇନ୍ଦ୍ରିୟ ତେଣୁ ବୋଲାଇ ।
ହରି—ମୁଣ୍ଡ ଦୁଇ ପାଖେ ଦୁଇଟି କାନ,
ତହିଁରେ ହୁଅଇ ଶ୍ରବଣ ଜ୍ଞାନ ।
ରାମ—ନାସିକା ସୁଗନ୍ଧ ଦୁର୍ଗନ୍ଧ ବାରେ,
ତାହା ଯୋଗେ ମୁହିଁ ନିଶ୍ୱାସ ମାରେ ।
ଶ୍ୟାମ—ଘ୍ରାଣେନ୍ଦ୍ରିୟ ନାମ ବୋଲାଏ ନାକ,
ଜିଭ ଅଛି ମୁଖ ଭିତର ପାଖ ।
ଚନ୍ଦ୍ର—ରସ ସ୍ୱାଦ ଗୁଣ ଜାଣି ପାରଇ,
ରସନେନ୍ଦ୍ରିୟ ଯେ ତାହାକୁ କହି ।
ଦାମ—ଚର୍ମ ବାୟୁ ପାରେ ଉଷ୍ଣ ଶୀତଳ,
ତେଣୁ ସ୍ପର୍ଶେନ୍ଦ୍ରିୟ ନାମ କେବଳ ।
ଗୋକୁଳ—ପଞ୍ଚେନ୍ଦ୍ରିୟ ଯାକ ଏକା ଥରକେ,
ଚିହ୍ନ ହାତ ମାର ସବ ବାଳକେ ।

*ଜଣେ ବାଳକ ଯଥାକ୍ରମ ପ୍ରତ୍ୟେକ ଇନ୍ଦ୍ରିୟକୁ ସ୍ପର୍ଶ କରି ଆବୃତ୍ତି କରିବା ସଙ୍ଗେ ସଙ୍ଗେ ଇନ୍ଦ୍ରିୟର କାର୍ଯ୍ୟଗୁଡ଼ିକ ଦେଖାଇବେ । ଯଥା, ଦେଖିବା, ଶୁଣିବା, ଶୁଙ୍ଘିବା, ସ୍ୱାଦବାରିବା, ଉଷ୍ଣତା ଓ ଶୈତ୍ୟ ବାରିବା ଇତ୍ୟାଦି । ଶେଷରେ ପଞ୍ଚେନ୍ଦ୍ରିୟଯାକ ସ୍ପର୍ଶ କରିବେ ।



## ଜାମୁ ।

ଜାମୁଗଛ, ଭଲି ଗଛ, କଳା ଫଳ ଫଳେ ।
ଗୋଟି ଗୋଟି ଝୁଲୁଥାଏ, କେତେ ପଡ଼େ ତଳେ । ୧ ।

ବାଳକାମାନେ ଏ ଗୀତ ଅବୃତ୍ତି କରବେ । "କଅଁସ୍ୱରେ ଘୋଇବା" "ଠୁଲ୍ଲୁ ଠୁଲ୍ଲୁ ହୋଇ ଗୁଲ୍ଲବା", "ଭୌ ଭୌ ଭୁକବା" "ହୁଅ ଘୋ, ଘୋ ହେବା" ଏ ସବୁର ଅଭିନୟ ହେବ । ଏଦ୍ୱାର ଅବୃତ୍ତି ସ୍ନେହସୂଚକ, ଧୀର ଓ ସୁମିଷ୍ଟ ହେବ ।





## ବିରାଡ଼ି ।



ମ୍ୟାଁ ଉଁ, ମ୍ୟାଉଁ ହୋଇ ବୋବାଏ ପୁଣି,
ଦୁଧ ଭାତ ଦେଲେ ଖୁଅଇ ଖୁସି । ୧ ।
ଶୁଏ ଚୁଲ୍ଲି ମୁଣ୍ଡେ ଉଷୁମ ଥାଲେ,
ଅନ୍ଧାରେ ବିରାଡ଼ି ଚାହି ସମାନେ ।
ମୂଷା ଝିଟିପିଟି, ପକ୍ଷୀ ଟିକିଆଇ,
ମାଛ, ମାଂସ, ଦୁଧେ ଖାଇଥା ଚାର ।
ଚାରି ଦୁଇ ଗୋଡ଼ ଅଟେ ନଳଥା,
ପାଦ ତଳପାଟି ଯେ କଅଁଳଥା ।
ଅଗ ଗୋଡ଼େ ପାଞ୍ଚ, ପଛରେ ଚଉ,
ଗୋଟିଗୋଟି ନଖ ପଡ଼େ ବାହାରି । ୨ ।

ଖୁସି ହେଲେ ପୁଣି ଲାଙ୍ଗୁଳ ପିଟେ,
ଖାଇବ ନଖ ଦେଇ ଦେହକୁ କଷେ । ୬ ।
ଅଖି ଜଳ ଜଳ, ଜଳ ଦାଢ଼ୁଆ,
ମା' ଠାରୁ ଶିଖାଉ ଶିଖନ୍ତି ଛୁଆ । ୭ ।
ଭୋକ ଲାଗିଲେ ସେ ପାଦେ ଲୋଟଇ,
ଅହଁସିଲେ ଘୁରୁ, ଘୁରୁ କୁଅଇ । ୮ ।
ବିରାଡ଼ିକୁ ସ୍ନେହ କର ବାଳକ,
ସୁଖ ନିରନ୍ତର ତାର ପାଳକ । ୯ ।

ଜଣେ ବାଳିକା କୋଡ଼ରେ ପୋଷା ବିରାଡ଼ିଟିଏ ଧରି ଓ ବିରାଡ଼ିର ବିଶେଷ ବିଶେଷ ଅଙ୍ଗରେ ହାତ ମାରି ଅବୃତ୍ତି ସଙ୍ଗେ ସଙ୍ଗେ ଅଭିନୟ କରିବ । "ଘୁରୁ" "ଘୁରୁ" ଶବ୍ଦଟି ମଧ୍ୟ ଅନୁକରଣ କରିବେ ।



## ଆତ ।



ପାଚିଲା ଆତ, ପାଚିଲା ଆତ,
କିଏ କିଣିବ ପାଚିଲା ଆତ,
ପାଚିଲା ଆତ, ପାଚିଲା ଆତ, କିଏ ନେବା ଆସ, ପାଚିଲା ଆତ ।

କେତେଗୁଡ଼ିଏ ଶିଶୁ ଠିଆ ହୋଇ ଥିବେ । ଜଣେ ବାଳକ, ଆତଗୁଡ଼ିଏ ଧରି ଏହି ଗୀତଟି ବୋଲି ବୋଲି ସେମାନଙ୍କ ସମ୍ମୁଖରେ ପହଞ୍ଚିବ । ସେମାନେ କିଛି କିଛି କିଣିବାର ଅଭିନୟ କରିବେ ।



କଟକ ଦତ୍ତପ୍ରେସରେ ଶ୍ରୀ ହରିମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ ।

ଶ୍ରୀଚନ୍ଦ୍ରଶେଖର ନନ୍ଦଙ୍କ ପ୍ରଣୀତ ।

# ପ୍ରକୃତି

ଅଭିନବ ସଂସ୍କରଣ ।

ପ୍ରକୃତି ପୁସ୍ତକ ଅନେକ ଦିନରୁ ଛପା ଶେଷ ହୋଇଥିବାରୁ ବିଦ୍ୟାଳୟ ଶିକ୍ଷକ ମହୋଦୟମାନେ ଏହାର ଅଭାବ ବୋଧ କରି ତତ୍ପରିବର୍ତ୍ତରେ ଅନ୍ୟ ବହି ପଢ଼ାଉ ଥିଲେ । ବର୍ତ୍ତମାନ ଏହାର ଅଭିନବ ସଂସ୍କରଣ ପ୍ରକାଶ ହୋଇଅଛି । ଆପଣମାନେ ଦୟା କଲେ କଟକର ସମସ୍ତ ପୁସ୍ତକାଳୟରେ ଓ ଅସ୍ମର ଶ୍ରୀ ନିତ୍ୟାନନ୍ଦ ପୁସ୍ତକାଳୟରେ ଅନାୟାସରେ ପାଇ ପାରିବେ ।

ପ୍ରକାଶକ ।

ଶ୍ରୀ ଦେବର୍ଷି ମହାପାତ୍ର ।